# ଜଣେ ବିଚିତ୍ର ଲୋକର କଥା



ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

ଜଣେ ବିଚିତ୍ର ଲୋକର କଥା
ମୂଳ ଇଂରାଜୀ ଲେଖା : ଜେ.ଡି.ସାଲିଙ୍ଗର୍
ଓଡିଆ ଅନୁରଚନା : ବିନୟକୃଷ୍ଣ ପଟ୍ଟନାୟକ
ଅଙ୍କନ : ବ୍ରଜ କିଶୋର ଜେନା
ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧

ଅକ୍ଷରସଜ୍ଜା : ଓରିକନ୍ କମ୍ପ୍ୟୁଟର୍ସ୍, ଭୁବନେଶ୍ୱର ।
ମୁଦ୍ରଣ : ପଦ୍ମା କମର୍ସିଆଲ୍ ସେଣ୍ଟର, ଭୁବନେଶ୍ୱର

ସହଯୋଗ ରାଶି : ତିନି ଟଙ୍କା ମାତ୍ର
ପ୍ରକାଶ କାଳ : ଜାନୁଆରୀ ପହିଲା, ୧୯୯୭

ଏହି ପୁସ୍ତିକାଟି '**ଖୁସିରେ ପଢିବା ଅଭିଯାନ**' (Jan Vanchan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।


- **The laughing man** ● Original English - J.D. Salinger
- Oriya Transcreation - Binaya Krushna Pattanayak.
- Published by B.G.V.S., Orissa for Jan Vachan Andolan
- Price - Rs. 3.00 ● Publication Period - 1.1.97.

ମୁଁ ଆପଣଙ୍କୁ ଏକ ମଜାଦାର କାହାଣୀ ଶୁଣାଇବି । ମୁଁ ଏହି କାହାଣୀଟିକୁ ୧୯୨୮ ମସିହାରେ ଶୁଣିଥିଲି । ସେତେବେଳେ ମୋ ବୟସ ମାତ୍ର ୯ ବର୍ଷ ଥିଲା । ମୁଁ ଗୋଟିଏ ନାମଜାଦା ଶିଶୁ କ୍ଲବର ସଭ୍ୟ ଥିଲି । ମୋଟରେ ଆମେ ୨୫ ଜଣ ପିଲା ଏହାର ସଦସ୍ୟ ଥିଲୁ । ପ୍ରତିଦିନ ଉପର ବେଳା ତିନିଟା ବେଳକୁ କ୍ଲବର ମୁଖିଆ ଆମର ସ୍କୁଲ୍ ଫାଟକ ନିକଟରେ ବସ୍ ଲଗାଉଥିଲେ ।

ଏଥିପାଇଁ ସେ ଆମ ମା' ବାପାଙ୍କ ଠାରୁ କିଛି ପଇସା ନେଉଥିଲେ । ବସ୍ ଲାଗୁ ଲାଗୁ ଆମେ ପିଲାଏ ଠେଲା ପେଲା ହୋଇ ବସକୁ ଉଠି ଯାଉଥିଲୁ । ଏହା ଆମକୁ କେନ୍ଦ୍ରୀୟ ପାର୍କକୁ ନେଇ ଆସୁଥିଲା । ଏହା ପରେ ଆମେ, ପାଗ ଠିକ୍ ଥିଲେ, ସନ୍ଧ୍ୟା ଯାଏଁ ଫୁଟବଲ୍ ବା ଅନ୍ୟ ଖେଳ ସବୁ ଖେଳୁଥିଲୁ । ଯଦି ବରଷା ଲାଗି ରହୁଥିଲା, ତେବେ ମୁଖିଆ ଆମକୁ ପ୍ରକୃତି ବିଜ୍ଞାନ ସଂଗ୍ରହାଳୟ ବା କଳା-ସଂଗ୍ରହାଳୟ ଦେଖାଇବାକୁ ନେଇ ଯାଉଥିଲେ ।

ଶନିବାର ଓ ଅଧିକାଂଶ ଛୁଟି ଦିନରେ ସେ ଆମମାନଙ୍କ ଘର ପାଖକୁ ବସ୍ ନେଇ ଆସୁଥିଲେ । ଦୂରରେ ଥିବା ଏକ ବଡ଼ ପାର୍କକୁ ନେଇ ଯାଉଥିଲେ । ସେଠାରେ ଆମେମାନେ ଅଧିକ ନିଶ୍ଚିନ୍ତ ହୋଇ ଖେଳି ପାରୁଥିଲୁ । କାରଣ, ଏହି ପାର୍କ ଯଥେଷ୍ଟ ବଡ଼ ଥିଲା । ତେଣୁ ଏଠାରେ ବିପଦ ନଥିଲା । ଏହିପରି ଭାବରେ ମୁଖିଆ ବେଶ୍ ସତର୍କ ଭାବରେ ଆମକୁ ନିଆ-ଆଣ କରୁଥିଲେ ।

ଆମର ଏହି ମୁଖିଆ ଜଣକ କ୍ଲବ ଚଳାଇବା ସହିତ ନିଜ ପାଠ ପଢା ବି ଜାରି ରଖିଥିଲେ । ସେ ବିଶ୍ୱବିଦ୍ୟାଳୟରେ ଓକିଲାତି ପଢୁଥିଲେ । ତାଙ୍କୁ ସେତେବେଳେ ବୋଧେ ବାଇଶି-ତେଇଶି ବର୍ଷ ବୟସ ହୋଇଥିଲା । ସେ ଜଣେ ସାଦାସିଧା ଓ ଲାଜକୁଳା ଯୁବକ ଥିଲେ । ତାଙ୍କୁ ଆମେ କେବେ ବି ଭୁଲି ପାରିବୁ ନାହିଁ । କିନ୍ତୁ ମୁଁ ଏଠାରେ ତାଙ୍କର ସବୁ ହାବଭାବ ଚର୍ଚ୍ଚା କରିବି ନାହିଁ । ବାସ୍ ଏତିକି କହିବି ଯେ, ସେ ଆମ ପିଲାଙ୍କ ଭିତରେ କିଛି ବି ଭେଦ ଭାବ ରଖୁ ନଥିଲେ । ଖେଳରେ ଖଣ୍ଡିଆ

ଖାବରା ହେଲେ, ସେ ସାଙ୍ଗେ ସାଙ୍ଗେ ଆମ ପାଖରେ ପହଞ୍ଚି ଯାଉଥିଲେ । ପ୍ରାଥମିକ ଚିକିତ୍ସାରେ ତାଙ୍କର ଅଦ୍‌ଭୁତ ଜ୍ଞାନ ଥିଲା । ମୋଟ ଉପରେ, ଆମେ ସମସ୍ତେ ତାଙ୍କୁ ଖୁବ୍ ଭଲ ପାଉଥିଲୁ ଓ ତାଙ୍କୁ ବେଶ୍ ସମ୍ମାନ ଦେଉଥିଲୁ ।



ମୁଖିଆଙ୍କର ଆଉ ଏକ ବିଶେଷ ଗୁଣ ଥିଲା । ସେ ଖୁବ୍ ସୁନ୍ଦର ଭାବରେ କାହାଣୀ କହି ଜାଣି ଥିଲେ । ଆମେ ଖେଳୁ ଖେଳୁ ସନ୍ଧ୍ୟା ହୋଇ ଯାଉଥିଲା । ହାରୁଥିବା ଦଳଟି ଖେଳକୁ ବନ୍ଦ କରିବା ପାଇଁ ଏହାକୁ ଏକ ବାହାନା କରୁଥିଲେ । ଝାଳଲାଳ ହୋଇ ଫେରିଲା ବେଳେ ତାଙ୍କର ଏହି କାହାଣୀ କହିବା କଳାଟି ଆମକୁ ଖୁବ୍ ଭଲ ଲାଗୁଥିଲା । ଆମେ ଟଣା ଓଟରା, ହୋ-ହଲ୍ଲା କରି ବସ୍ ଆଡକୁ ଦୌଡି ଯାଉଥିଲୁ । ମୁଖିଆଙ୍କ ପାଖ ସିଟ୍‌ରେ ଜାଗା ଦଖଲ କରି ନେଉଥିଲୁ । କିଛି ସମୟ ଧରି ବସିଲା ଜାଗାରେ ବେଶ୍ ପାଟି ତୁଣ୍ଡ ଚାଲୁଥିଲା । ତା' ପରେ ଧୀରେ ଧୀରେ ସବୁ ଶାନ୍ତ

ହୋଇ ଯାଉଥିଲା । ଏଥର ହିଁ ସେ ନିଜ ଜାଗାରେ ବସୁଥିଲେ । ଡ୍ରାଇଭର୍ ସିଟ୍‌ରେ ଆରାମରେ ବସି ସେ କାହାଣୀର ପର ଭାଗଟି କହିବାକୁ ଆରମ୍ଭ କରୁଥିଲେ । କାହାଣୀଟି ପୂରା ହେବାକୁ ବେଶ୍ କିଛି ଦିନ ଲାଗି ଯାଉଥିଲା । କିନ୍ତୁ ସେ କାହାଣୀଟି ଆରମ୍ଭ କରିବା ଠାରୁ ସରିବା ଯାଏଁ ଆମେ ତାକୁ ଏକ ଲୟରେ ଶୁଣୁ ଥିଲୁ ।

କାହାଣୀର ବିଷୟବସ୍ତୁ ଅନୁସାରେ ସେ ସ୍ୱରକୁ ବଦଳାଇ ଏକ ନାଟକୀୟ ପରିବେଶ ଗଢି ତୋଳୁଥିଲେ । ଏହା ଫଳରେ ଆମ ପାଇଁ କାହାଣୀଟି ଅଧିକ ମନଛୁଆଁ ହୋଇ ଯାଉଥିଲା । ଥରେ ସେ ଆମକୁ ଗୋଟିଏ ଅତ୍ୟନ୍ତ ମନଛୁଆଁ ଓ ରୋମାଞ୍ଚକର କାହାଣୀ ଶୁଣାଇଲେ । ଏହା ଥିଲା ଜଣେ 'ବିଚିତ୍ର ଲୋକ' ବିଷୟରେ । ଆପଣ ବି ଏ କାହାଣୀଟି ଶୁଣିଲେ ଏଥିରେ ହଜି ଯିବେ ।

ଗୋଟିଏ ଧନୀ ଓ ଧର୍ମପରାୟଣ ଦମ୍ପତ୍ତି ଥିଲେ । ତାଙ୍କର ଗୋଟିଏ ବୋଲି ପୁଅ ଥିଲା । ସେ ଛୁଆ ଥିଲାବେଳେ ଚୀନ୍ ଦେଶର ଡାକୁମାନେ ତାକୁ ଅପହରଣ କରି ନେଲେ । ତାକୁ ଫେରାଇବା ବଦଳରେ ସେମାନେ ମୋଟା ଟଙ୍କା ଦାବୀ କଲେ । କିନ୍ତୁ ଏହି ଧନୀ ଦମ୍ପତ୍ତି ବେଶ୍ ଧର୍ମପରାୟଣ ଥିଲେ । ସେମାନେ ନିଜ ପୁଅ ବଦଳରେ ଅର୍ଥ ଦାନ କରିବାକୁ ରାଜି ହେଲେ ନାହିଁ । ତାଙ୍କ ପାଇଁ ଏହି କାମଟି ଧର୍ମ ବିରୁଦ୍ଧ ଥିଲା ।

ଏ କଥା ଶୁଣି ଡାକୁମାନେ ବହୁତ ରାଗିଗଲେ । ସେମାନେ ପିଲାଟିର ମୁଣ୍ଡକୁ ଜଣେ ବଢେଇର କବଜା ଭିତରେ ଭରି ଦେଇ ଏହାକୁ ଜୋର୍‌ରେ କଷି ଦେଲେ । ଫଳରେ ପିଲାଟିର ମୁହଁର ଆକାର ବଦଳି ଗଲା । ସେ ବଡ଼ ହେଲା ବେଳକୁ ତା ମୁହଁଟି ବିଚିତ୍ର ପ୍ରକାରର ହୋଇଗଲା ।

ତା ମୁଣ୍ଡରେ ବାଳ ଉଠିଲା ନାହିଁ । ମୁଣ୍ଡର ଆକାର ବି ଅଖାଡୁଆ ହୋଇଗଲା । ମୁହଁ ବଦଳରେ ନାକ ତଳେ ଅଣ୍ଡା ଆକାରର ବଡ଼ ଗାତଟିଏ ହୋଇଗଲା । ଦୁଇ ନାକ ପୁଡାରେ ମାଂସ ଭରି ରହିଥିଲା । ଏହା ବାହାରକୁ ବି ବଢି ରହିଥିଲା । ତା



ମୁହଁକୁ ଦେଖିଲେ ଯେତିକି ଡ଼ର ଲାଗୁଥିଲା, ସେତିକି ଖରାପ ବି ଲାଗୁଥିଲା । ଏହି ବିଚିତ୍ର ଓ ଭୟଙ୍କର ମୁହଁଟି ଦେଖିଲା ଲୋକ ମୂର୍ଚ୍ଛା ହୋଇ ଯାଉଥିଲେ । ଏହା କହିଲା ବେଳେ ଆମ ପ୍ରିୟ କାହାଣୀକାର ମୁହଁକୁ ବଙ୍କେଇ ତେଡେଇ ଅଭିନୟ ବି କରୁଥିଲେ । ଆମକୁ ଏହା ଖୁବ୍ ଭଲ ଲାଗୁଥିଲା ।

ତେଣୁ ତା'ର ଚିହ୍ନା ପରିଚିତ ଲୋକମାନେ ତା'ଠାରୁ ଦୂରେଇ ରହୁଥିଲେ । ମଜାର କଥା ଥିଲା ଡାକୁମାନଙ୍କ କାମରେ । ସେମାନେ ବି ତାକୁ ଦେଖିଲେ ଡରି ଯାଉଥିଲେ । ସେ ତାଙ୍କ ଆଡ୍‌ଡା ସ୍ଥଳୀରେ ଏଣେ ତେଣେ ବୁଲୁଥିଲା । କିନ୍ତୁ ତା'କୁ

ସବୁବେଳେ ମୁହଁକୁ ଲୁଚାଇ ରଖିବାକୁ ପଡୁଥିଲା । ସେମାନେ ତା' ପାଇଁ ଅଫିମ ଗଛର ଲାଲ ଫୁଲରେ ଏକ ମୁଖା ବନାଇ ଥିଲେ । ସେ ଏଥିରେ ମୁହଁକୁ ଘୋଡାଇ ଏପଟ ସେପଟ ହେଉଥିଲା । ମୁଖା ଯୋଗୁଁ ସେମାନେ କେବଳ ତା'ର ଭୟଙ୍କର ମୁହଁ ଦେଖିବାରୁ ବଞ୍ଚି ଯାଉଥିଲେ, ତାହା ନୁହେଁ । ଏଥି ସହ ସେମାନେ ଆଉ ଏକ ସୁବିଧା ବି ପାଉଥିଲେ । ମୁଖାର ଅଫିମ ଫୁଲର ଉତ୍କଟ ଗନ୍ଧରୁ ସେ କେଉଁଠି ଅଛି ତାହା ସେମାନେ ଜାଣି ନେଉଥିଲେ ।

ପ୍ରତିଦିନ ସକାଳେ ଲୋକଟି ପୂରାପୂରି ଏକଲା ରହୁଥିଲା । ଏହି ସୁଯୋଗରେ ସଜାଗ ଲୋକଟି ଚୁପ୍‌ଚାପ୍ ପାଖର ଘନ ଜଙ୍ଗଲକୁ ଚାଲି ଯାଉଥିଲା । ସେଠାରେ ସେ ଅନେକ ପଶୁ ପକ୍ଷୀଙ୍କ ସହ ସାଙ୍ଗ ହେବାରେ ଲାଗିଲା । ତା' ସାଙ୍ଗ ଦଳରେ ଥିଲେ କୁକୁର, ବାଘ, ଚିଲ, ମଇଁଷି, ହେଟା, ଅଜଗର ଆଦି ନାନା ଜୀବଜନ୍ତୁ । ସେଠାରେ ସେ ମୁହଁରୁ ମୁଖା ବାହାର କରି ଦେଉଥିଲା । ସେମାନଙ୍କୁ ଅତି ମଧୁର ସ୍ୱର ଓ ଭାବରେ ଅନେକ କଥା କହୁଥିଲା । ସେମାନଙ୍କୁ ସେ ଜମା ଅସୁନ୍ଦର ବା ଅଖାଡୁଆ ଲାଗୁ ନ ଥିଲା । ସେମାନେ ତା ମଧୁର କଥାବାର୍ତ୍ତାରେ ଭରସି ଯାଇଥିଲେ ।

ଏପରି ଭାବେ ଏହି ବିଚିତ୍ର ଲୋକଟି ଡାକୁଙ୍କ ଗହଣରେ ଦିନ ବିତାଇବାରେ ଲାଗିଲା । ଡାକୁଙ୍କ ଆଖପାଖରେ ରହି ସେ ତାଙ୍କର ସବୁ କାରବାର ଓ ରହସ୍ୟ ଜାଣିଗଲା । ମଝିରେ ମଝିରେ ତାଙ୍କର ଆଲୋଚନାକୁ ସେ କାନ ପାରି ଶୁଣୁ ଥିଲା ଏଥିରୁ ତାଙ୍କ ପେଷା ବିଷୟରେ ସେ ଅନେକ କଥା ଜାଣି ପାରିଲା । ଏହାକୁ ଆଧାର କରି ସେ ନିଜେ ଅଧିକା କାମିକା ଧନ୍ଦାଟିଏ ଆରମ୍ଭ କରି ଦେଲା ।

ପ୍ରଥମେ ସେ ଏହା ଛୋଟ ମୋଟରେ କଲା । ସେ ଚୀନ୍‌ର ଗାଁ ଗହଳିରେ ଲୁଟ୍‌ମାର୍ ଅପହରଣ କଲା । ଜରୁରୀ ପରିସ୍ଥିତିରେ ସେ ହତ୍ୟା ବି କରୁଥିଲା । ଖୁବ୍ ଶୀଘ୍ର ସେ ଏଥିରେ ବିଖ୍ୟାତ ହୋଇଗଲା । ତା'ର ବିଭିନ୍ନ ଅପରାଧ କାହାଣୀ ଦୂର ଦୂରାନ୍ତକୁ ଖେଳାଇଗଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ତା' ସାଥିରେ ଥିବା ଡାକୁମାନେ ସବୁଠୁ ଡେରିରେ ଏ କଥା ଜାଣି ପାରିଲେ ।



ତା'ର ଏହି ଖ୍ୟାତି ଶୁଣି ଈର୍ଷ୍ୟାରେ ସେମାନେ ପାଗଳ ହୋଇ ଉଠିଲେ । ଦିନେ ରାତିରେ ସେମାନେ କୌଣସି ଉପାୟରେ ଏହି ବିଚିତ୍ର ଲୋକଟିକୁ ନିଶା ଖୁଆଇ ଦେଲେ । ସେମାନେ ଭାବିଥିଲେ, ନିଶା ପ୍ରଭାବରେ ଲୋକଟି ଗାଢ ନିଦରେ ଶୋଇ ଯାଇଥିବ । ସେମାନେ ତା' ବିଛଣା ପାଖକୁ ଗଲେ । ଦେଖିଲେ, ଲୋକଟି ପାଦ ଠାରୁ ମୁଣ୍ଡ ଯାଏଁ ଚଦର ଢାଙ୍କି ଶୋଇ ଯାଇଛି ।

ସେମାନେ ସମସ୍ତେ ଏକା ବେଳକେ ଟାକୁ ଛୁରୀରେ ଆକ୍ରମଣ କରି ଲୋକଟିକୁ ହତ୍ୟା କଲେ । କିନ୍ତୁ ଏ କ'ଣ ? ଏ ସେହି ଲୋକ ନଥିଲା । ଏ ଥିଲା ଡାକୁ ସର୍ଦ୍ଦାରର

ମା' । ଏଣେ ସର୍ଦ୍ଦାରର ଦଣ୍ଡ ଭୟ ସାଙ୍ଗଙ୍କୁ ତେଣେ ଲୋକଟି ପ୍ରତି ପ୍ରଚଣ୍ଡ ରାଗରେ ସେମାନେ ଅନ୍ଧ ହୋଇଗଲେ । ଲୋକଟିର ରକ୍ତ ପାଇଁ ସେମାନେ ଆହୁରି ଭୋକିଲା ହୋଇ ଉଠିଲେ । କିନ୍ତୁ ଲୋକଟି ବେଶ୍ ଚାଲାକ୍ ଥିଲା । ଓଲଟା ସେ ସବୁ ଡାକୁଙ୍କୁ ଗୋଟିଏ ବଖରାରେ ବନ୍ଦ କରି ଦେଲା । ମଝିରେ ମଝିରେ ସେଠାରୁ ଜଣେ ଅଧେ ଖସି ଯାଉଥିଲେ । ତା' ପ୍ରତି ବିପଦ ବି ସୃଷ୍ଟି କରୁଥିଲେ । କିନ୍ତୁ ସେ କାହାକୁ ବି ଜୀବନରେ ମାରିବା ବିଷୟ ଚିନ୍ତା ବି କରୁ ନଥିଲା । ସେ ଯଥେଷ୍ଟ ଦୟାଳୁ ଥିଲା ।

ଦେଖୁ ଦେଖୁ ଅଜବ ଲୋକଟି ସବୁଠୁ ଧନୀ ଲୋକ ବନିଗଲା । ସେ ନିଜର ଅଧିକାଂଶ ଧନକୁ ନିଜର ଗୁପ୍ତ ରୂପରେ ଗୋଟିଏ ସ୍ଥାନୀୟ ମଠକୁ ଦାନ କରି ଦେଲା । ବାକି ଧନରେ ସେ କିଛି ହୀରା କିଣି ରଖିଲା । ତା'ର ନିଜର ଆବଶ୍ୟକତା ବେଶ୍ କମ୍ ଥିଲା । ସେ କେବଳ ଭାତ ଓ ଛଆଣ ରକ୍ତ ହିଁ ଖାଉଥିଲା ।

ଟୀହତର ତୁଫାନୀ ସମୁଦ୍ର କୂଳରେ ଗୋଟିଏ ଛୋଟିଆ କୁଡିଆରେ ସେ ରହିଥିଲା । ଏଠାରେ ଭୂମିତଳେ ଗୋଟିଏ ବ୍ୟାୟାମଶାଳା ଓ ବନ୍ଧୁକ ଚାଳନା ଜାଗା ଥିଲା । ତା' ସାଥିରେ ତା'ର ଚାରି ଜଣ ନିବିଡ ସାଙ୍ଗ ରହୁଥିଲେ । ସେମାନେ ଥିଲେ - କଳା ତେଣା ନାମକ ଏକ ବଳିଷ୍ଠ ହେଟା, ଓମ୍ବା ନାମକ ଏକ ବଣି, ହାଙ୍ଗ୍ ନାମକ ଜଣେ ଭୀମକାୟ ମଙ୍ଗୋଲିଆ ଲୋକ ଓ ଜଣେ ଅତି ସୁନ୍ଦରୀ ମହିଳା । କିନ୍ତୁ ଏହି ବିଚିତ୍ର ଲୋକଟି ଗୋଟିଏ କଳା ରେଶମ ପରଦା ଉହାଡରେ ନିଜକୁ ଲୁଚାଇ ରଖି ଏମାନଙ୍କୁ ବିଭିନ୍ନ କାମ ବତାଉ ଥିଲା । ଏପରିକି ପ୍ରିୟ ଓମ୍ବା ବି ତା' ମୁହଁକୁ ଦେଖି ପାରି ନଥିଲା ।

ସେ ଏଥର ଚୀନ ସୀମା ଡେଇଁ ଫ୍ରାନସ୍, ପ୍ୟାରିସ୍ ଆଦି ଜାଗାରେ ଆଖି ପକାଇଲା । ସେଠାରେ ବି ତା'ର ଖ୍ୟାତି ବଢିଗଲା । ସେଠାରେ ଜଣେ ବିଖ୍ୟାତ ଗୁଇନ୍ଦା ଥିଲେ । ତାଙ୍କ ନାଁ ଥିଲା ମାର୍ସେଲ୍ ଡୁଫାର୍ଜ୍ । ତାଙ୍କର ଝିଅଟିଏ ଥିଲା ।

ସେମାନେ ଏହି ବିଚିତ୍ର ଲୋକଟିର ଏସବୁ କାରବାର ବିଷୟରେ ଜାଣି ପାରିଲେ । କ୍ରମେ ସେ ଦୁହେଁ ଲୋକଟିର ସବୁଠୁ ବଡ଼ ଶତ୍ରୁ ବନିଗଲେ । ସେମାନେ

ଲଗାତାର ତାହାର ପିଛା କଲେ । କିନ୍ତୁ କିଛି ସମୟର ଛକା ପଂଝା ପରେ ଲୋକଟି କୁଆଡେ ଉଭେଇ ଯାଉଥାଏ । ସେମାନେ ଏହାର ସାମାନ୍ୟତମ ସୂଚନା ବି ପାଇ ପାରୁ ନଥାନ୍ତି ।

ଦିନେ ଡୁଫାର୍ଜ୍ ଓ ତାଙ୍କ ଝିଅ ଏଥିରେ ଆଂଶିକ ସଫଳ ହେଲେ । ବିଚିତ୍ର ଲୋକଟିର ପ୍ରିୟ ସାଥି କଳା ଡେଣା ହେଟାଟି ସେମାନେ ବିଛାଇ ଥିବା ଜାଲରେ ପଡିଗଲା । ସେମାନେ ହେଟାଟିକୁ ଧରି ନେଲେ । ସେମାନେ ଜାଣିଥିଲେ ଯେ, ନିଜର ପ୍ରିୟ ହେଟାକୁ ମୁକୁଳାଇବା ପାଇଁ ସେ ନିଶ୍ଚୟ କିଛି ନା କିଛି କରିବ ।



ସେମାନେ ଘୋଷଣା କଲେ, ବିଚିତ୍ର ଲୋକଟି ଯଦି ତାଙ୍କୁ ଧରା ଦିଏ, ତେବେ ତା'ର ସାଥିଟିକୁ ଛାଡି ଦିଆଯିବ । ଏଥିରେ ଅଜବ ଲୋକଟି ନିଜର ଚରମ ବନ୍ଧୁତ୍ୱ ଓ ବିଶ୍ୱାସର ପରିଚୟ ଦେଲା । ସେ ଏହି ପ୍ରସ୍ତାବରେ ରାଜି ହୋଇଗଲା । ଠିକ୍ କରାଗଲା,

ପ୍ୟାରିସ୍ ପାଖରେ ଥିବା ଘନ ଜଙ୍ଗଲରେ ଏକ ନିର୍ଦ୍ଦିଷ୍ଟ ଜାଗାରେ ଅଧ ରାତି ବେଳକୁ ସେମାନେ ଏକାଠି ହେବେ । ଏହା ପରେ କଳା ଡେଣା ହେଟାକୁ ଛାଡି ଦିଆଯିବ ।

କିନ୍ତୁ ବାସ୍ତବରେ ଡୁଫାର୍ଜ୍ ଓ ତାଙ୍କ ଝିଅ ଠିକ୍ କରିଥିଲେ, କଳା ଡେଣାକୁ ଛାଡିବେ ନାହିଁ । ସେମାନେ କଳା ଡେଣାକୁ ଖୁବ୍ ଡରୁଥିଲେ ଓ ଖାତିର କରୁଥିଲେ । ଅଧ ରାତିର ଅଦଳ ବଦଳ ପାଇଁ କଳା ଡେଣା ବଦଳରେ ସେମାନେ ଆଉ ଏକ ହେଟାକୁ ରଖିଲେ । କଳା ଡେଣା ପରି ଏହାର ବାଁ ପାଦରେ ବି ଧଳା ରଙ୍ଗ ବୋଳି ଦିଆ ଯାଇଥିଲା ।

କିନ୍ତୁ ଏହି ଯୋଜନା ବନାଇଲା ବେଳେ ଡୁଫାର୍ଜ୍ ଗୋଟିଏ କଥା ଛାଡି ଯାଇଥିଲା । ତା'ର ଖିଆଲ ନଥିଲା ଯେ, ଅଜବ ଲୋକଟି ଜଣେ ଭାବୁକ ଓ ହେଟା ବି ମଣିଷର ଭାବକୁ ବୁଝିପାରେ । ଡୁଫାର୍ଜ୍‌ର ଝିଅ ବିଚିତ୍ର ଲୋକଟିକୁ କଣ୍ଟା ଥିବା ତାରରେ ଗୋଟିଏ ଗଛରେ ବାନ୍ଧିବାରେ ଲାଗିଲା । ଏ ସମୟରେ ଲୋକଟିର ଭାବୁକ ଭାବଟି ତେଜି ହୋଇଗଲା । ସେ ନିଜର ସୁନ୍ଦର, ମଧୁର ସ୍ୱରରେ ନିଜ ବନ୍ଧୁ କଳା ଡେଣାକୁ ତା'ର ବିଦାୟ ବେଳର କିଛି ମରମଭେଦୀ କଥା କହିଲା ।

କିନ୍ତୁ ସତଟି ଏଇଆ ଥିଲା ଯେ, ତା' ଠାରୁ ଅଳପ ଦୂରରେ ନକଲି କଳାଡେଣା ଠିଆ ହୋଇଥିଲା । ସେ ଲୋକଟିର କହିବା ଶୈଳୀ ଦ୍ୱାରା ବହୁତ ପ୍ରଭାବିତ ହେଲା । ସେ ପେକ୍ଷା ବଷୟରେ କହୁଥିବା କଥା ସେ ମନ ଦେଇ ଶୁଣିଲା । ଶେଷ ଯାଏଁ ଶୁଣିବାକୁ ତା'ର ଧୈର୍ଯ୍ୟ ରହିଲା ନାହିଁ । ସେ ବନ୍ଧା ଥାଇ ପଂଖାକୁ ଆଗ ପଛ କରିବାରେ ଲାଗିଲା । ଶେଷରେ ସେ ବିଚିତ୍ର ଲୋକଟିକୁ ଜଣାଇ ଦେଲା ଯେ, ସେ କଳାଡେଣା ନୁହେଁ । ସେ ଆଉ ଜଣେ ହେଟା । କଳାଡେଣା ରୂପରେ ସଜାଇ ତାକୁ ଠିଆ କରି ଦିଆ ଯାଇଛି । ସେ ଆହୁରି ବି କହିଲା ଯେ ସେ କେବେ ଚୀନ୍ ଯାଇ ନାହିଁ କି ତା'ର କେବେ ଚୀନ ଯିବାର ଇଛା ବି ନାହିଁ ।

ଏହି କଥା ଶୁଣି ବିଚିତ୍ର ଲୋକଟି ରାଗି ଗଲା । ସେ ସେହି ଚାନ୍ଦିନୀ ରାତିରେ ନିଜ ମୁଖାଟିକୁ ହଟାଇ ଦେଲା । ନିଜ ଅସଲ ଚେହେରାଟି ସେ ଡୁଫାର୍ଜ୍ ଓ ତା' ଝିଅକୁ

ଦେଖାଇ ଦେଲା । ତା'ର ଭୟଙ୍କର ମୁହଁକୁ ଦେଖି ତୁଫାର୍ଜ୍‌ର ଝିଅ ଚେତା ହରାଇ ପଡିଗଲା । କିନ୍ତୁ ତା' ବାପା ଏହା ଦେଖି ପାରିଲା ନାହିଁ । ଠିକ୍ ସେତିକି ବେଳେ ସି ତାକୁ କାଶ ହେଉଥାଏ । ସେ ମୁହଁ ତଳକୁ କରି କାଶୁଥାଏ । ସେ ଥିଲା ଜଣେ ଯକ୍ଷ୍ମା ରୋଗୀ । ତେଣୁ ମଝିରେ ମଝିରେ ସେ ଏପରି ଅନେକ ସମୟ ଧରି କାଶୁଥିଲା ।



ସୌଭାଗ୍ୟବଶତଃ, ସେ ବିଚିତ୍ର ଲୋକଟିର ମୁହଁ ଦେଖି ପାରିଲା ନାହିଁ । ତା' କାଶ ବନ୍ଦ ହେବା ପରେ ତା ଆଖି ସିଧା ତା' ଝିଅ ଉପରେ ପଡିଲା । ସେତେବେଳକୁ ସେ ବେହୋସ ହୋଇ ତଳେ ପଡିଥାଏ । ଏହାର କାରଣଟି ବୁଝିବା ପାଇଁ ତାକୁ ବେଶୀ ସମୟ ଲାଗିଲା ନାହିଁ । କାଳ ବିଳମ୍ବ ନକରି ସେ ପ୍ରସ୍ତୁତ ହୋଇଗଲା । ସେ ତା'ର ଚାରିନଳିଆ ପିସ୍ତଲ ଉଠାଇଲା । ସେ ନିଜର ବାଁ ହାତରେ

ନିଜ ଆଖିକୁ ଘୋଡାଇ ପକାଇଲା । ଏଥର ବିଚିତ୍ର ଲୋକଟିର ଶ୍ୱାସ ଶବ୍ଦକୁ ଲକ୍ଷ୍ୟ କରି ସେ ଏକାଥରକେ ଚାରିଟି ଗୁଳି ଚଳାଇ ଦେଲା ।

ବାସ୍ ଏତିକି । ଆମ ମୁଖିଆ ସେଦିନ ଏତିକି କହି କାହାଣୀଟିକୁ ଅଟକାଇ ଦେଲେ । ପୁଣି କାଲି କହିବେ । ଦ୍ୱିତୀୟ ଦିନ ଆମେ ପୁଣି ପାର୍କକୁ ଖେଳିବା ପାଇଁ ଗଲୁ । ସନ୍ଧ୍ୟା ହେଉ ହେଉ ଆମେ ବଳକା କାହାଣୀ ଶୁଣିବା ପାଇଁ କାନ ପାରି ବସିଲୁ । କାହାଣୀଟି ଯେଉଁଠି ଅଟକି ଥିଲା, ଏହା ପରେ କ'ଣ ହେବ ? ଆମେ ଏହା ଜାଣିବା ପାଇଁ ଅଧୀର ହୋଇ ଉଠୁଥାଉ ।

ଆମ ଭିତରେ ସମସ୍ତେ ଆଜି ମୁଖିଆଙ୍କର ପୂରା ପାଖକୁ ଲାଗି ବସିବାକୁ ଚାହୁଁଥାଏ । ବସ ଆଡକୁ ଆମେ ଆଖି କାନ ମୁଜି ଦଉଡୁଥାଉ । କେହି କେହି ତ ନିଜ ସାମାନପତ୍ର ନେବା ପାଇଁ ବି ଭୁଲି ଯାଇଥାନ୍ତି । ଜଣେ ପିଲାର ହାତରୁ ସ୍ୱେଟର୍ ଗଳି ପଡିଲା । ଏହା ମୋ ଗୋଡରେ ଲାଖିଗଲା । ଏହାକୁ ଭିଡି ଭିଡି ମୁଁ ବସ୍ ପାଖରେ ପହଞ୍ଚିଲି ।

କିନ୍ତୁ ସେତେବେଳେକୁ ବେଶ୍ ଡେରି ହୋଇ ସାରିଥାଏ । ଭଲ ସିଟ୍‌ଗୁଡିକରେ ଅନ୍ୟ ସାଥିମାନେ ବସି ସାରିଥାନ୍ତି । ମତେ ବସ୍‌ର ମଝି ସିଟ୍‌ରେ ବସି ଖୁସି ରହିବାକୁ ପଡିଲା । ମୁଁ ଚିଡିଗଲି । ମୋ ପାଖ ସିଟ୍‌ର ପିଲାଟାକୁ ମୁଁ କହୁଣୀରେ ଗୋବାଏ ଦେଲି । ମୁହଁକୁ ଶୁଖାଇ ମୁଁ ମୁଖିଆଙ୍କ ଆସିବା ବାଟକୁ ଅନାଇ ରହିଲି ।

ମୁଖିଆ ବସ୍‌ରେ ଚଢିଲେ । ସବୁ ଦିନ ପରି ସେ ଦିନ ବି କୋଳାହଳ ଥମିଗଲା । କିନ୍ତୁ ପୂରା ବନ୍ଦ ହେଲା ନାହିଁ । ଲାଗୁଥାଏ, ଯେମିତି ସିନେମା ଘରେ ଆଲୁଅ ଲିଭାଯିବା ସମୟ ଆସିଯାଇଛି । ସମସ୍ତଙ୍କ ଗପ ସପ ଧିମେଇ ପ୍ରାୟ ପୂରା ବନ୍ଦ ହୋଇଗଲା । ତଥାପି, ମୁଖିଆ ଆମ ଆଗରୁ କହି ପକାଇଲେ, ''ଶୁଣ । ତୁମେ ପାଟି ପୂରା ବନ୍ଦ ନ ହେଲେ, ମୁଁ କାହାଣୀ କହିବା ଆରମ୍ଭ କରିବି ନାହିଁ ।''

କ୍ଷଣକ ଭିତରେ ବସ୍ ଭିତରେ ନୀରବତା ଛାଇଗଲା । ଏଥର ମୁଖିଆଙ୍କ ଆଗରେ କାହାଣୀ କହିବା ଛଡା ଦ୍ୱିତୀୟ ଚାରା ହିଁ ନଥିଲା । କାହାଣୀ ଆରମ୍ଭ

କରିବା ପାଇଁ ମୁଖିଆ ଏଥର ତାଙ୍କ ଜାଗାରେ ବସିଲେ । ଏହା ପରେ ସେ ନିଜ ରୁମାଲ ବାହାର କଲେ । ନାକକୁ ସଫା କରିନେଲେ । ଆମେ ଧୈର୍ଯ୍ୟର ସହ ତାଙ୍କ ମୁହଁକୁ ଅନାଇ ରହିଥାଉ । ଏହା ପରେ ସେ କାହାଣୀର ବଳକା ଅଂଶ କହିବାକୁ ଆରମ୍ଭ କଲେ । କିନ୍ତୁ ଆଜି ମାତ୍ର ପାଞ୍ଚ ମିନଟ୍ ମଧ୍ୟରେ ହିଁ କାହାଣୀଟି ସରିଗଲା ।

ତୁଫାର୍ଜ୍‌ର ଚାରିଟିଯାକ ଗୁଳି ବିଚିତ୍ର ଲୋକଟିର ଦେହରେ ବାଜିଲା । ଏଥିରୁ ଦୁଇଟି ତା' ଛାତିରେ ଭେଦି ଗଲା । ଗୁଳି ମାରିବା ପରେ ବି ତୁଫାର୍ଜ୍ ତା ମୁହଁକୁ ହାତରେ ଢାଙ୍କି ରଖିଥାଏ । ଏତିକିବେଳେ ସେ ବିଚିତ୍ର ଲୋକଟିର ଚିତ୍କାର ଶୁଣିବାକୁ ପାଇଲା । ସେ ଖୁସି ହୋଇ ନିଜ ଝିଅ ପାଖକୁ ଦଉଡି ଗଲା । ତାକୁ ସେ ହୋସକୁ ଆଣିଲା । ଏଥର ସାହସର ସହ ଦୁହେଁ ମୁହଁ ଉଠାଇ ଲୋକଟି ଆଡକୁ ଚାହିଁଲେ ।



ତା' ମୁଣ୍ଡଟି ତଳକୁ ଝୁଙ୍କି ପଡିଥାଏ । ଥୋମଣିଟି ଆସି ଛାତିରେ ଲାଗିଥାଏ । ଛାତି ରକ୍ତରେ ଜୁବୁବୁବୁ ହୋଇ ଯାଇଥାଏ । ମନେ ହେଉଥିଲା ଯେପରି ସେ ମରି ଯାଇଛି । ଧୀରେ ଧୀରେ ବାପ ଝିଅ ଲୋକଟି ଆଡକୁ ପାଦ ବଢାଇଲେ । କିନ୍ତୁ ପ୍ରକୃତରେ ବିଚିତ୍ର ଲୋକଟି ଜିଇଁଥିଲା । ସେ ଚୁପ୍‌ଚାପ୍ ତା' ପେଟର ମାଂସପେଶୀକୁ ଆଉଁସୁଥାଏ । ଡୁଫାର୍ଜ୍ ଓ ତା' ଝିଅ ଏ କଥା ଜାଣି ନଥିଲେ । ସେମାନେ ତା' ପାଖରେ ପହଞ୍ଚିଗଲେ । ଏତିକି ବେଳେ ହଠାତ୍ ଲୋକଟି ମୁହଁ ଉଠାଇ ଭୟଙ୍କର ଅଟ୍ଟହାସ୍ୟ କରିବାରେ ଲାଗିଲା ।

ଚଟାପଟ୍ ସେ ଚାରିଟିଯାକ ଗୁଳିକୁ ବାହାର କରି ତାଙ୍କ ଆଗରେ ରଖିଦେଲା । ଏହି ଆକସ୍ମିକ ଘଟଣାଟି ଡୁଫାର୍ଜ୍ ଓ ତା' ଝିଅ ଉପରେ ଜୋର୍‌ଦାର୍ ପ୍ରଭାବ ପକାଇଲା । ଚମକିପଡି ଦୁହିଁଙ୍କ କଲିଜା ସତେ ଯେମିତି ଖଣ୍ଡ ଖଣ୍ଡ ହୋଇଗଲା । ଦୁହେଁ ଧଡାସ୍ କରି ଲୋକଟିର ପାଦ ତଳେ ପଡି ମରିଗଲେ ।

ଅନେକ ଦିନ ବିତିଗଲା । ବିଚିତ୍ର ଲୋକଟି ଗଛଟି ଦେହରେ କଣ୍ଟା ଥିବା ତାରରେ ସେଇମିତି ବନ୍ଧାଥାଏ । ବାପ ଝିଅଙ୍କ ଶବ ସେଠାରେ ସେମିତି ପଡି ସଡିବାରେ ଲାଗିଲା । ଏଣେ ବିଚିତ୍ର ଲୋକଟି ଦେହରୁ ରକ୍ତ ବୋହି ଚାଲିଥାଏ । ତାକୁ ଛଆଣ ରକ୍ତ ବି ଖାଇବାକୁ ମିଳିଲା ନାହିଁ। ତା'ର ବି ମୃତ୍ୟୁ ପାଖେଇ ଆସୁଥାଏ ।

କିନ୍ତୁ ଦିନେ ସେ ତା'ର ଫଟା ଅଥଚ ଭାବପୂର୍ଣ୍ଣ ସ୍ୱରରେ ଜଙ୍ଗଲର ପଶୁମାନଙ୍କର ସାହାଯ୍ୟ ପାଇଁ ଗର୍ଜନ କଲା । ତା'ର ପ୍ରିୟ ବଣି ଓମ୍ବାକୁ ଡାକିବା ପାଇଁ ସେ ସେମାନଙ୍କୁ କହିଲା । ପଶୁମାନେ ତା' କଥା ମାନିଲେ । କିନ୍ତୁ ପ୍ୟାରିସ୍ - ଚୀନ୍ ସୀମାନ୍ତ ଯାଏଁ ଲମ୍ବା ଦୂରତାକୁ ଟପିବାରେ ବେଶ୍ ସମୟ ବିତିଗଲା ।

ଔଷଧ ପେଡି ଓ ଛଆଣ ରକ୍ତ ନେଇ ଓମ୍ବା ସେଠାରେ ପହଞ୍ଚିଲା ବେଳକୁ ବିଚିତ୍ର ଲୋକଟିର ଚେତା ବୁଡି ସାରିଥାଏ । ଓମ୍ବା ସେଠାରେ ପହଞ୍ଚୁ ପହଞ୍ଚୁ ଆଗ ବିଚିତ୍ର ଲୋକଟିର ମୁଖାଟିକୁ ଦେଖିନେଲା । ଏହା ଡୁଫାର୍ଜ୍‌ର ଝିଅର ଶବ ଉପରେପଡିଥାଏ । ସେ ଏହାକୁ ଉଠାଇ ନେଇ ଆଗ ଲୋକଟିର ମୁହଁରେ ଲଗାଇ ଦେଲା ।



ସେ ସମ୍ମାନର ସହ ତା' ମାଲିକର ମୁହଁକୁ ଲୁଚାଇ ପକାଇଲା । ତା' ପରେ ସେ ତା'ର କ୍ଷତଗୁଡ଼ିକରେ ପଟି ଲଗାଇବାରେ ଲାଗିଲା ।

କିଛି ସମୟ ପରେ ବିଚିତ୍ର ଲୋକଟିର ଆଖି ଅଳପ ଖୋଲିଲା । ସେତେବେଳକୁ ଓମ୍ବା ଛଆଣ ରକ୍ତ ଥିବା ଥାଳୀଟିକୁ ତା' ମୁହଁ ପାଖକୁ ବଢ଼ାଇ ଦେଲା । କିନ୍ତୁ ବିଚିତ୍ର ଲୋକଟି ଏହାକୁ ପିଇଲା ନାହିଁ । ସେ କଷ୍ଟେ ମଷ୍ଟେ ତା ପ୍ରିୟ କଳାଡେଣାର ନାଁ ଧରି ଡାକିଲା । ଓମ୍ବା ତା' ମୁଣ୍ଡ ତଳକୁ ନୁଆଁଇ ତା' ମାଲିକକୁ ଜଣାଇଲା, ତୁଫାର୍ଡ୍ ଓ ତା' ଝିଅ ତାକୁ ମାରି ଦେଲେ । ଏହା ଶୁଣି ବିଚିତ୍ର ଲୋକଟିର ମୁହଁରୁ ଏକ ଛାତିଫଟା କୋହ ଶୁଣାଗଲା । ତା' ହାତ କମ୍ପି ଯାଉଥାଏ । ସେ କଷ୍ଟରେ ତା ହାତଟିକୁ



ଛଅଆଣ ରକ୍ତ ଥିବା ଥାଳୀ ପାଖକୁ ନେଲା । ଏହାକୁ ନିଜ ହାତରେ ସେ ମକଚି ପକାଇଲା । ଏଥିରେ ଯାହା କିଛି ଅଳପ ରକ୍ତ ରହିଥିଲା, ଏହା ତାର କହୁଣୀ ଆଡକୁ ବୋହି ଗଲା । ସେ ଓମ୍ବାକୁ ମୁହଁ ବୁଲାଇ ଦେବା ପାଇଁ ହୁକୁମ ଦେଲା । ଓମ୍ବା ବି ତା' ଆଜ୍ଞା ପାଳନ କଲା । ଏହା ପରେ ବିଚିତ୍ର ଲୋକଟି ତା ମୁହଁରୁ ମୁଖାଟିକୁ ଭିଡି ବାହାର କରି ଦେଲା ଓ ରକ୍ତ ରଞ୍ଜିତ ମାଟି ଆଡକୁ ଝୁଙ୍କି ପଡିଲା ।

କାହାଣୀଟି ଏତିକିରେ ପୂରା ସରିଗଲା । ମୁଖିଆ ବସ୍ ଚଳାଇଲେ । ବସ୍‌ରେ ଆମ ଭିତରେ ଥିବା ସବୁଠୁ ସାନ ପିଲାଟି କାନ୍ଦି ପକାଇଲା । ତାକୁ କେହି ବି ଚୁପ କରାଇଲେ ନାହିଁ । ମୋ କଥା କହିବି ? ସେତେବେଳକୁ ମୋ ପାଦ ଥରୁଥାଏ ।

କିଛି ସମୟ ପରେ ବସ୍‌ଟି ଅଟକିଲା । ମୁଁ ବସ୍‌ରୁ ଓହ୍ଲାଇ ବାହାରକୁ ଆସିଲି । ପ୍ରଥମେ ମୋ ଆଖି ଗୋଟିଏ ଜିନିଷ ଉପରେ ପଡିଲା । ଗୋଟିଏ ଲାଇଟ୍ ଖୁଣ୍ଟ ଦେହରେ ନାଲିଆ କାଗଜ ଖଣ୍ଡେ ଲାଗି ପବନରେ ଦୋହଲୁ ଥାଏ । ମତେ ଲାଗିଲା ଯେପରି ଲାଲ୍ ଫୁଲର ପାଖୁଡାରେ ତିଆରି କାହାର ମୁଖାଟିଏ ସେଠାରେ ଲାଗିଛି ।



# ଜନ୍ମ ଭୂମି...ମହାନ

ଭାରତ ମୋର ଜନ୍ମ ଭୂମି ମୁଁ ତା'ର ବୀର ସନ୍ତାନ,
ସେହି ଦେଶର ଗାନ୍ଧୀ ବୁଦ୍ଧ ବିବେକାନନ୍ଦ ମହାନ ।
ଭାରତ ମୋର ..... (୦)

ସନ୍ଥ ବିନୋବା, ଜୟ ପ୍ରକାଶ ସୁଭାଷ ବୀର ମହାନ,
ଝାନସୀ ରାଣୀ ଲକ୍ଷ୍ମୀବାଈ ଦୁର୍ଗାବତୀ ମହାନ ।
ସେହି ଦେଶରେ ଜନମ ଲଭି ମୁଁ ଅଟଇ ମହାନ ।
ଭାରତ ମୋର..... (୧)

ସୁଜଳା ସୁଫଳା ପଲ୍ଲୀ ଭୂମି ଗାଁ ଚାଷୀଟି ମହାନ,
ସବୁରି ମୁଖକୁ ଅନ୍ନ ଦିଏ (ତା') କର୍ମ ବି ମହାନ,
ସେହି ଦେଶରେ ଜନମ ଲଭି ମୁଁ ଅଟଇ ମହାନ ।
ଭାରତ ମୋର..... (୨)

ଏଇ ଦେଶର ମାଟିରୁ ଶୁଭେ ସର୍ବେ ଭବନ୍ତୁ ସୁଖୀନଃ
ବିଶ୍ୱ ଏକ କୁଟୁମ୍ବ ଆମ ଆମେ ତା'ର ସନ୍ତାନ ।
ଆମେ ସମସ୍ତେ ଦିବ୍ୟ ମାନବ ସଭିଏଁ ତ ମହାନ ।
ଭାରତ ମୋର..... (୩)

● *ନିରାକାର ବେହେରା*

# ପ୍ରଜ୍ଞାଭୂମି

ପ୍ରଜ୍ଞାଭୂମି ଏ ଭାରତ ଭୂମି
ଆମେ ତା'ର ସନ୍ତାନ
ହସିବା, ଖେଳିବା, ଗାଇବା, ନାଚିବା
ମଧୁମୟ ଏ ଜୀବନ
ପ୍ରଜ୍ଞାଭୂମି..... (୦)

ଆମେ ମୁକ୍ତି ଚାହୁଁ - ବନ୍ଦୀ ନୁହେଁ
ଆମେ ଶାନ୍ତି ଚାହୁଁ - ଯୁଦ୍ଧ ନୁହେଁ
ଆମେ ପ୍ରଜ୍ଞାବାନ - ଆମେ ପ୍ରଜ୍ଞାବତୀ
ଆମେ ନଚିକେତା - ଆମେ ଦୁର୍ଗାବତୀ
ସ୍ପନ୍ଦିତ ଏ ଆମ ପ୍ରାଣ
ପ୍ରଜ୍ଞାଭୂମି ..... (୧)

ଛୋଟ ଛୋଟ ଛୁଆ ନୋହୁଁ ଆମେ ମହାନ
ଖିଲି ଖିଲି ହସେ ଭରା ଆମ ଜୀବନ
ନୂଆ ସମାଜ ଆମ ସପନ
ଆମେ ଏ ମାଟି ମାଆ ସନ୍ତାନ ।
ହସିବୁ, ଖେଳିବୁ, ଗାଇବୁ, ନାଚିବୁ
ମଧୁମୟ ଏ ଜୀବନ
ପ୍ରଜ୍ଞାଭୂମି ..... (୨)

● *ନିରାକାର ବେଉରା*